# KRISI PATHA

BY

GOBINDA RATH



# କୃଷିପାଠ ।

ଶ୍ରୀ ଗୋବିନ୍ଦରଥଙ୍କଦ୍ୱାରା

ସଙ୍କଳିତ ।



FIRST EDITION.



CUTTACK.

Printed by Cuttack Printing Company.

1882.

ମୂଲ[illegible]ର ୫॰/ ଅଣା ମାତ୍ର ।

Babu Girish Chandra Basu. M. A.
„ Byomkesh Chakraverty. M. A.

Dear Sirs,

With sentiments of deep respect and affection I beg to inscribe this treatise on Agriculture to you in appreciation of the noble zeal which animated you to acquire knowledge of the useful science of Agriculture in spite of the perils of the sea and thereby to render important service to this country by bringing your scientific knowledge and practical experience to bear upon the mode of agriculture that is now in vogue in India.

Yours, &c
Gobinda Rath

# କୃଷିପାଠ ।



କୃଷି ବିଷୟକ ବିଶେଷ ଜ୍ଞାତବ୍ୟ ବିଷୟ ।

ଭୂମିରେ ମଞ୍ଜି ପୋତିଲେ ଜଳ, ବାୟୁ ଆଉ ଉତ୍ତାପର ପରିମାଣାନୁସାରେ ତାହା ଅଙ୍କୁରିତ ହୁଏ । ଯେଉଁ ଶସ୍ୟପ୍ରତି ଯେରୂପ କାର୍ଯ୍ୟ କରିବାର ଆବଶ୍ୟକ, ତାହାପ୍ରତି ସେହିପ୍ରକାର କାର୍ଯ୍ୟ କଲେ ଅବଶ୍ୟ ଫଳଲାଭ ହେବ ସନ୍ଦେହ ନାହିଁ । କିନ୍ତୁ ତଦ୍ବିପରୀତ କାର୍ଯ୍ୟ କଲେ ତହିଁରେ ଉପଯୁକ୍ତ ଫଳଲାଭ ହେବାର ସମ୍ଭାବନା ନାହିଁ । ଅତଏବ ଉଦ୍ଭିଦ ମାନଙ୍କର ସ୍ୱଭାବ ପରୀକ୍ଷିତ ହେବାର ଅତ୍ୟନ୍ତ ଆବଶ୍ୟକ ।

୧ । ମାଟି ଦୁଇପ୍ରକାର । ଯଥା; ମଟାଳ ଓ ବାଲିମାଟି । ଏହି ଦୁଇପ୍ରକାର ମାଟିର ସଂଯୋଗରେ ନାନାପ୍ରକାର ମାଟି ଉତ୍ପନ୍ନ ହୁଏ, ଏହି ମିଶ୍ରିତ ମାଟି କୃଷି ପକ୍ଷରେ ବଡ଼ ଉପକାରୀ ଅଟେ ।

୨ । ଭୂମିରେ ମଞ୍ଜି ପୋତିଲେ ଜଳ, ବାୟୁ ଆଉ ଉତ୍ତାପର ପରିମାଣାନୁସାରେ ତାହା ଅଙ୍କୁରିତ ହୁଏ ।

୩ । ଯେଉଁ ସମସ୍ତ ବୃକ୍ଷର ମୂଳ, ଶାଖାବିଶିଷ୍ଟ ସେମାନଙ୍କ ପକ୍ଷରେ ମଟାଳ ମାଟି ଅତ୍ୟୁତ୍ତମ । ଯଥା; ଆମ୍ର, ପନସ ଇତ୍ୟାଦି ନାନାପ୍ରକାର ବୃକ୍ଷ ।

୪ । ଯେଉଁ ସମସ୍ତ ବୃକ୍ଷର ଫଳରେ ଓ କାଣ୍ଡରେ ଜଳର ଅଂଶ ଅଧିକ, ସେହି ମାନଙ୍କ ପକ୍ଷରେ ବାଲୁକାମୟ ମୃତ୍ତିକା ଅତ୍ୟୁତ୍ତମ । ଯଥା; ତରଭୁଜ, ଫୁଟି ଇତ୍ୟାଦି ।

୫ । ମିଶ୍ରିତ ମୃତ୍ତିକାରେ ଅନେକ ପ୍ରକାର ଶସ୍ୟ କରାଯାଇ ପାରେ ।

୬ । ନଦୀକୂଳ ବା ଯେଉଁ ୨ ସ୍ଥାନରେ ପଟୁ ପଡ଼ଇ ସେହି ୨ ସ୍ଥାନରେ ଉତ୍ତମ ଶସ୍ୟ ହୋଇ ପାରେ ।

୭ । ଗ୍ରାମାଦିର ଧୋଇ ପାଣି ଯାଇ ଯେଉଁ ସ୍ଥାନରେ ପ୍ରବେଶ ହୁଏ, ସେହି ସ୍ଥାନ କୃଷି ପକ୍ଷରେ ବଡ ଉପଯୋଗୀ ।

୮ । ପୁରୁଣା କାନ୍ଥର ମାଟି ଏବଂ ପୁଷ୍କରିଣୀର ପଙ୍କ ନେଇ ଜମିରେ ପକାଇଲେ ତହିଁର ଉର୍ବରତା ଶକ୍ତି ବୃଦ୍ଧି ହୁଏ ।

୯ । କ୍ଷେତ୍ରରେ ଏକ ଜାତୀୟ ଶସ୍ୟ କ୍ରମାଗତ କଲେ ମୃତ୍ତିକାର ଉର୍ବରତା ନଷ୍ଟ ହୁଏ, ଏ ନିମିତ୍ତ ସମୟେ ୨ ଭୂମିରେ ଭିନ୍ନଜାତୀୟ ଶସ୍ୟ ଓ ସାର ପ୍ରଦାନ କରିବାର ଉଚିତ ।

୧୦ । ବାୟୁର ସଂସ୍ରବେ ମୃତ୍ତିକା ବିଶୋଧିତ ହୁଏ, ଏଥିପାଇଁ ବର୍ଷାନ୍ତେ ଅର୍ଥାତ୍ କାର୍ତ୍ତିକାଦି ମାସରେ ଅଥବା ଗ୍ରୀଷ୍ମ କାଳରେ ମୃତ୍ତିକା ଖନନ କରି ଏକ ୨ ବାର ଓଲଟାଇ ଦେବା କର୍ତ୍ତବ୍ୟ, ତାହା ହେଲେ ରୌଦ୍ର ଓ ବାୟୁଲାଗି ମୃତ୍ତିକା ଶୁଷ୍କ ହୁଏ, ସୁତରାଂ ବୃକ୍ଷର ମୂଳ ଓ ଅଙ୍କୁରାଦି ରସ ପ୍ରଭୃତି ଯେଉଁ ସମସ୍ତ କାରଣରେ ଭୂମି ଅନୁତ୍ପାଦକ ଥାଏ, ସେ ସମସ୍ତ ବିନଷ୍ଟ ହୋଇ ଭୂମିର ଅସାଧାରଣ ଉତ୍ପାଦିକା ଶକ୍ତି ଜନ୍ମେ ।

୧୧ । ଅନୁତ୍ପାଦକ ଭୂମିର ମୃତ୍ତିକା ଖନନ କରି ପୋଡାଇଲେ ଅନେକ ଉପକାର ଦର୍ଶଇ ଅନେକ ସ୍ଥାନର

କୃଷକମାନେ ଧାନ କାଟନେଇ ନଡ଼ାରେ ଅଗ୍ନି ଲ-
ଗାଇ ଦଅନ୍ତି ।

୧୨ । ଭୂମିର ଉର୍ବରତା ଶକ୍ତି ବୃଦ୍ଧି କରିବା ନିମିତ୍ତ ଚହିଁରେ
ସାର (ଖତ) ଦେବାର ଉଚିତ ସାଧାରଣ କୃଷି
ପକ୍ଷରେ ପିଡ଼ଅ ଓ ଗୋବରର ସାର ଯଥେଷ୍ଟ ।

୧୩ । ଉଦ୍ଭିଜମାନଙ୍କର ସ୍ୱଭାବାନୁସାରେ ଯେଉଁ ଋତୁରେ
ଯେଉଁ ଶସ୍ୟ ଉତ୍ପାଦିତ ହେବାର ନିୟମ ଅଛି ସେହି
ଋତୁରେ ସେହି ଶସ୍ୟ କରିବାର ଉଚିତ ନୋହିଲେ
ସନ୍ତୋଷଜନକ ଫଳଲାଭର ସମ୍ଭାବନା ନାହିଁ ; ଆଉ
ଏକ ଜାତୀୟ ଶସ୍ୟ ପ୍ରତିବର୍ଷ ଏକ ଭୂମିରେ ବୁଣିବା-
ର ଉଚିତ ନୁହେଁ ।

୧୪ । ବୀଜବପନ ଓ ବୃକ୍ଷ ରୋପଣ କରିବାର ପୂର୍ବରେ
ଭୂମିକି ଉତ୍ତମରୂପେ ଚାଷ କରି ମଇଦ୍ୱାରା ସମତୁଲ ଓ
ମାଟିକି ଉତ୍ତମରୂପେ ଚୂର୍ଣ୍ଣ କରିବାର ଉଚିତ ।

୧୫ । ବୀଜ ଅତି କ୍ଷୁଦ୍ର ହେଲେ ରୋପଣ ସମୟରେ ଅତ୍ୟଳ୍ପ
ମାଟି ଚପା ଦେବାର ଉଚିତ ନଚେତ୍ ଗଜା ହେବା
ପକ୍ଷରେ ବିଶେଷ ବ୍ୟାଘାତ ହେବ ।

୧୬ । ଯେଉଁ ସମସ୍ତ ବୀଜ ଅଧିକ ଜଳ ବାୟୁ ସହ୍ୟ କରି
ପାରନ୍ତି ସେମାନଙ୍କୁ ବର୍ଷା କାଳରେ ଏବଂ ଯେଉଁମା-
ନେ ଜଳ ଲାଗିଲେ ସଡ଼ି ଯାଆନ୍ତି ସେମାନଙ୍କୁ ଶୀତ
କାଳରେ ରୋପଣ କରିବାର ଉଚିତ ।

୧୭ । ଗଜା ଜନ୍ମିଲେ ଗଜାର ମୂଳସ୍ଥ ମୃତ୍ତିକା ସମୟେ୨
ଅଲଗା କରି ଦେବାର ଉଚିତ ।

୧୮ । ଗଛର ମୂଳସ୍ଥ ମୃତ୍ତିକା ସରସ ରଖିବା ନିମିତ୍ତ ସମୟେ୨ ଜଳ ସେଚନ କରିବାର ଆବଶ୍ୟକ ।

୧୯ । ଅପରାହ୍ଣ କାଳରେ ଜଳ ସେଚନ କର୍ତ୍ତବ୍ୟ, ରୌଦ୍ର-ସମୟରେ ଜଳସେଚନ କରିବାର ବିହିତ ନୁହେ ।

୨୦ । ଗଛର ମୂଳରେ ସାର ( ଖତ ) ଦେବାର ଉଚିତ ମାତ୍ର ସାର ଦେବା ସମୟରେ ତାହା ଠିକ ମୂଳରେ ନ ଦେଇ ମୂଳର କିଞ୍ଚିତ ଦୂରରେ ଚତୁଃପାର୍ଶ୍ୱରେ ଦେବାର ଆବଶ୍ୟକ ।

୨୧ । ବୃକ୍ଷର ମୂଳର ମୃତ୍ତିକା ସରସ ଥିଲେ ଜଳ ସେଚନ ବିଧେୟ ନୁହେ କାରଣ ଅଧିକ ଜଳ ହେତୁରୁ ତାହାର ମୂଳ ସଡ଼ି ଯିବାର ସମ୍ଭାବନା ।

୨୨ । କୌଣସି ଗଛର ମୂଳରେ ସଦ୍ୟ ଗୋମୟ ଦେବାର ଉଚିତ ନୁହେ ପରନ୍ତୁ ଗୋମୟ ସାର ରୂପରେ ବ୍ୟବହାର କରିବା ଉଚିତ ।

୨୩ । ଭୂମିର ନିମ୍ନରେ ଇଟା ବା ପଥର କୌଣସି କଠିନ ପଦାର୍ଥ ଥିଲେ ସେ ସ୍ଥାନରେ ବୃକ୍ଷ ରୋପଣ କରିବାର ବିଧେୟ ନୁହେ ।

୨୪ । ନୀରସ ଏବଂ ତାପଯୁକ୍ତ ଭୂମିରେ ବୀଜ ବପନ ଅନୁଚିତ ଏରୂପ ଭୂମିରେ ବୀଜ କଦାପି ଅଙ୍କୁରିତ ହୁଏ ନାହିଁ ।

୨୫ । କୌଣସି ବିଦେଶୀୟ ବୃକ୍ଷ ଏ ଦେଶରେ ରୋପଣ କଲେ ତାହା ଉତ୍ତାପର ତାରତମ୍ୟ ହେତୁରୁ ଫଳୋତ୍ପାଦକ ନ ହେଲେ ତାହାର ମୂଳର ମୃତ୍ତିକା ଅଲଗା କରିଦେଇ ସୂର୍ଯ୍ୟୋତ୍ତାପରେ ବହିଷ୍କୃତ ରଖିବ, ତହୁଁ ଉତ୍ତାରୁ ସ୍ଥାନାନ୍ତରରୁ ଅନ୍ୟ ସରସ ମୃତ୍ତିକା ଆଣି

ତାହା ମୂଳରେ ଦେଲେ ଅପେକ୍ଷାକୃତ ଫଳ ପୁଷ୍ପ ବର୍ଦ୍ଧ-
କ ହେବାର ସମ୍ଭାବନା ।

## ସାର (ଖତ)

ଭୂମିର ଉତ୍ପାଦିକା ଶକ୍ତି ବୃଦ୍ଧି କରିବାର ନିମିତ୍ତ କ୍ଷେତ୍ରରେ ସାର ପ୍ରଦାନ କରିବାର କର୍ତ୍ତବ୍ୟ, ସାରି ନାନାପ୍ରକାର ହୋଇ ପାରେ । ଯଥା ଉଦ୍ଭିଜ୍ଜସାର, ପ୍ରାଣିସାର ଓ ଧାତୁସାର, ଏହି ସାରମାନଙ୍କ ଯୋଗରେ ନାନାପ୍ରକାର ମିଶ୍ରିତ ସାର ପ୍ରସ୍ତୁତ କରି ଯାଇ ପାରେ ।

## ଉଦ୍ଭିଜ୍ଜସାର ।

ବୃକ୍ଷର ଶାଖାପତ୍ର ସଡ଼ିଲେ ଅତି ଉତ୍କୃଷ୍ଟ ସାର ହୁଏ, ଏହି ସାର କ୍ଷେତ୍ରରେ ସାବଧାନ ହୋଇ ଦେବାର ଉଚିତ, ଏହା ପରିମାଣାତିରିକ୍ତ ହେଲେ ବିଶେଷ କ୍ଷତି ହେବାର ସମ୍ଭାବନା । ଏକମାଣ ଭୂମିରେ ଏକମହଣ ଉଦ୍ଭିଜ୍ଜ ସାର ଅର୍ଥାତ୍ ପିଡ଼ିଆ ପ୍ରଦାନ କଲେ ଯଥେଷ୍ଟ । ସାରକୁ ଉତ୍ତମ ଚୂର୍ଣ୍ଣ କରି ତାହା ଭୂମିରେ ପକାଇବ ତଦନନ୍ତର ଅଳ୍ପ ପରିମାଣରେ ଚାଷ କରି ତାହା ଉପରେ ମୃତ୍ତିକାର ଚାପ ଦେବ । ସୋରିଷ ରାଶି ଜଡ଼ା ପ୍ରଭୃତିର ପିଡ଼ିଆ ଉଦ୍ଭିଜ୍ଜ ସାର ମଧ୍ୟରେ ଉତ୍କୃଷ୍ଟ

## ପ୍ରାଣିସାର ।

ପ୍ରାଣୀମାନଙ୍କର ମାଂସ, ରକ୍ତ, ଚର୍ମ, ଅସ୍ଥି; ଶୃଙ୍ଗ ପ୍ରଭୃତି ବିକୃତ ହୋଇ ମୃତ୍ତିକା ସଙ୍ଗରେ ମିଶ୍ରିତ ହେଲେ ଉତ୍ତମ ସାର ପ୍ରସ୍ତୁତ ହୁଏ । ମୃତ ଜୀବ ଜନ୍ତୁର ଶରୀର କୌଣସି ଏକ ଗର୍ତ୍ତରେ ପକାଇ ତାହା ଉପରେ ଚୂନ ଦେଇ ମୃତ୍ତିକା-ଦ୍ୱାରା ଉତ୍ତମରୂପେ ଗର୍ତ୍ତକୁ ପୋତିବ । ଦୁଇ ତିନମାସ ଗଲା ଉତ୍ତାରୁ ତାହାକୁ ବାହାର କରି ତାହା ସହିତ କଞ୍ଚା ଚୂନ

ମଞ୍ଜାର କ୍ଷେତ୍ରରେ ପକାଇଲେ କ୍ଷେତ୍ରର ଉର୍ବରତା ଶକ୍ତି ଅ- ଧିକ ବୃଦ୍ଧି ହୁଏ ! କୌଣସି ଜନ୍ତୁର ଶୃଙ୍ଗକୁ ଚୂର୍ଣ୍ଣ କର ବା ଅସ୍ଥି ଖଣ୍ଡ୨ କରି ଭୂମିରେ କ୍ଷେପଣ କଲେ ଅଧିକ କାଳ ପର୍ଯ୍ୟନ୍ତ ଭୂମିର ଉତ୍ପାଦିକା ଶକ୍ତି ବୃଦ୍ଧି ହୁଏ, ଏବଂ ଏଥିରେ ମୃତ୍ତିକା ସର୍ବଦା ବସ୍ତାରତ ଥାଏ, ଯେଉଁ ସବୁ ମୃତ୍ତିକାରେ ଚକ୍କଣ ଅଂଶ ଅଧିକ ପ୍ରାଣିସାର ସେହି ସବୁ ସ୍ଥାନ ପକ୍ଷରେ ଅତି ଉତ୍ତମ । ଧାତୁସାର ଏ ଦେଶରେ ପ୍ରଚଳିତ ନାହିଁ, ଏବଂ ତଦୁପଯୁକ୍ତ ନାନାବିଧ ଧାତୁ ମଧ୍ୟ ଦୁଷ୍ପ୍ରାପ୍ୟ ।

### ମିଶ୍ରିତ ସାର ।

ଉଦ୍ଭିଜ୍ଜ ସାର, ପ୍ରାଣି ସାର ଏକତ୍ର ମିଶ୍ରିତ ହେଲେ "ମିଶ୍ରି- ତସାର" ପ୍ରସ୍ତୁତ ହୁଏ । ଗୋ, ମେଷ, ମହିଷ ଘୋଟକ ପ୍ରଭୃତଙ୍କର ବିଷ୍ଠା ମଧ୍ୟ ମିଶ୍ରିତ ସାର ମଧ୍ୟରେ ପରିଗଣନୀୟ । ଅସ୍ମମାନଙ୍କ ଦେଶରେ ଗୋମୟ ସାର ଅତି ପ୍ରଧାନ; ମାତ୍ର ସଦ୍ୟ ଗୋମୟ କୃଷି ପକ୍ଷରେ ଅଧିକ ଉପକାରୀ ନୁହେ । ଗୋମୟ ସାର ପ୍ରସ୍ତୁତ କରିବାକୁ ହେଲେ କୌଣସି ଏକ ଛାୟାବୃତ ସ୍ଥାନରେ ଗୋଟିଏ ଗର୍ତ୍ତ କରିବ, ଗର୍ତ୍ତରୁ ନିମ୍ନଭାଗ ଏକ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱକୁ କ୍ରମନିମ୍ନ ହେବାର ଅବଶ୍ୟକ, ଗର୍ତ୍ତର ଯେଉଁ ପାର୍ଶ୍ୱ ଅପେକ୍ଷାକୃତ ଉନ୍ନତ ସେହି ପାର୍ଶ୍ୱରେ ଗୋମୟ ପକାଇ ତାହାର ଉପରେ ସମୟେ୨ ଗୋମୂତ୍ର ଢାଳିବାକୁ ହେବ, ଏରୂପ କଲେ ଗୋବରର ସାରଭାଗ ଯାଇ ଅପର ପାର୍ଶ୍ୱରେ ସଞ୍ଚିତ ହେବ, ଏହି ସଞ୍ଚିତ ଗୋମୟ- ସାର କ୍ଷେତ୍ର ପକ୍ଷରେ ଅତି ଉପାଦେୟ ପଦାର୍ଥ । ଗୋମୟ- ସାର କ୍ଷେତ୍ରରେ ପ୍ରଦାନ କରିବା ପୂର୍ବରୁ କ୍ଷେତ୍ରକୁ ଉତ୍ତମ- ରୂପେ ଚଷ ଓ ମୃତ୍ତିକାକୁ ଚୂର୍ଣ୍ଣ କରିବାର ଉଚିତ, ତାହା ନ

ହେଲେ ସାର ମୃତ୍ତିକାରେ ଉତ୍ତମରୂପେ ମିଶ୍ରିତ ହୁଏ ନାହିଁ, ସୁତରାଂ ବୃକ୍ଷ ସତେଜ ହୋଇ ଫଳୋତ୍ପାଦକ ହେବା ପକ୍ଷରେ ବ୍ୟାଘାତ ଜନ୍ମେ । ଗୋ, ମେଷ, ମନୁଷ୍ୟ, ଘୋଟକ ପ୍ରଭୃତି-ଙ୍କର ମୂତ୍ରକୁ କିଛି କାଳ ସଡ଼ାଇ ରଖି ତହିଁରେ ଚାରିଗୁଣ ଜଳ ମିଶାଇ କ୍ଷେତ୍ରରେ ସେଚନ କଲେ ମୃତ୍ତିକା ଅପେକ୍ଷାକୃତ ବାଲୁକା ହୁଏ । ମାତ୍ର ସଦ୍ୟ ମୂତ୍ର କ୍ଷେତ୍ରରେ ପ୍ରଦାନ କଲେ ଚାଷ ବା ବୃକ୍ଷ ଦଗ୍ଧ ହୋଇ ଯାଏ । ଅତଏବ ତହିଁରେ ସାବଧାନ ହେବାର ଉଚିତ ।

---

## କୃଷି ପ୍ରଣାଳୀ ।

### ଧାନ ।

ଅମ୍ଭମାନଙ୍କର ଏହି ଦେଶରେ ଧାନ ଅତ୍ୟୁତ୍କୃଷ୍ଟ ଶସ୍ୟ ସମସ୍ତଙ୍କର ଏହା ଜୀବନୋପାୟ ଅଟେ, ଅତଏବ ଧାନର କୃଷି ପ୍ରଣାଳୀ ପ୍ରଥମତଃ ଏହି ପୁସ୍ତକରେ ଲିଖିତ ହେଲା । ଧାନ ତିନ ପ୍ରକାର । ଯଥା ; ଶାରଦ, କୋଳଥ ଓ ବାଲୁଅ ।

### ଶାରଦ ଧାନ ।

ଯେଉଁ ଭୂମିରେ ଶାରଦ ଧାନ କରିବାକୁ ହେବ ତାକୁ ମାଘ ବା ଫାଲ୍‌ଗୁନ ମାସରେ ବୃଷ୍ଟି ହେଲା ଉତ୍ତାରୁ ଦୁଇ ଓଡ଼ ଚାଷ କରି ତହିଁରେ ଗୋମୟ ସାର ଦେଇ ପକାଇ ରଖିବ । ବୈଶାଖ ଏବଂ ଜ୍ୟେଷ୍ଠ ମାସ ଅଧ୍ୟରେ ବର୍ଷା ହେଲା ଉତ୍ତାରୁ ଉକ୍ତ ଭୂମିକି ଉତ୍ତମରୂପେ ( ସାତ ଓଡ଼ରୁ କମ ନୁହେ ) ଚାଷ କରି ତହିଁରେ ଧାନ ବୁଣି ମଇଦ୍ୱାରା ଭୂମିକି ସମତୁଲ କରିବ । ଚବଶ ହସ୍ତ ଏକ ମାଣ ଭୂମିରେ କଟକ ୩୨ ସେର ଧାନ ବୁଣିବାର ଉଚିତ । ଧାନ ଗଛ ହୋଇ

ଭୂମିରେ ଉତ୍ତମରୂପେ ପାଣି ଲାଗିଲା ଉତ୍ତାରୁ ତାହାକୁ ହଳ-ଦ୍ୱାରା ଚୃଷ କରିବାକୁ ହେବ, ଏହାକୁ ଲୋକେ ବହୁଡା ବା ବେଉଷଣ କହନ୍ତି । ଏରୂପ କରିବାର କାରଣ ଏହି ଯେ ମୃତ୍ତିକା ବିସ୍ତାରିତ ହେଲେ ଗଛରୁ ଅଧିକ ପରିମାଣରେ ମୃତ୍ତିକା ଭେଦ କରିବାକୁ ଓ ରସାକର୍ଷଣ କରିବାକୁ ସାମର୍ଥ୍ୟ ହୁଏ । ବହୁଡାର ପନ୍ଦର ଦିନ ଉତ୍ତାରୁ ଭୂମିରେ ଯେଉଁ ସବୁ ଘାସ ଥିବ ତାହା ଉତ୍ତମରୂପେ ବଛାଇ ଦେଇ କ୍ଷେତରେ ଜଳ ଆବଦ୍ଧ କରି ରଖିବ । ଯେଉଁ ସ୍ଥାନରେ ଧାନ ଗଛ ନ ଥିବ ଅନ୍ୟ ସ୍ଥାନରୁ ଧାନ ଗଛ ଆଣି ସେହି ସ୍ଥାନ ପୂରଣ କରିବାକୁ ହେବ, ଏହାକୁ ଖେଞ୍ଚୁଆ କହନ୍ତି । ଶାରଦ ଧାନ ଚୃଷର ଏହି ନିୟମ ମାତ୍ର ଖାଲ ଭୂମିରେ ଗଣ୍ଡଧାନ* ଓ ଡିପ ଭୂମିରେ ଲଘୁ ଧାନ କରିବାକୁ ହେବ । ଶାରଦ ଧାନ ମାର୍ଗଶିର ଓ ପୁଷ ମାସରେ କଟାଯାଏ ଶାରଦ ଧାନ ପଥ୍ୟ, ପୁଷ୍ଟିକର ଓ ସୁସ୍ୱାଦୁ ।

### କୋଳଅ ଧାନର ଚୃଷ ।

କୋଳଅ ଧାନ ଡିପ ଭୂମିରେ, ଏବଂ ନଦୀ କୂଳ, ପ୍ରଭୃତି ସ୍ଥାନରେ ଉତ୍ତମ ହୁଏ । ମାଘ ମାସରୁ ଭୂମିକି ଉତ୍ତମରୂପେ ଚୃଷ କରି ଘାସ ବାଛି ଗୋମୟର ସାର ଦେଇ ପକାଇ ରଖିଥିବ, ଜ୍ୟେଷ୍ଠ ମାସ ଆଦ୍ୟରେ ବର୍ଷା ହେଲା ଉତ୍ତାରୁ ଭୂମିକି ପାଞ୍ଚ ଓଡରୁ କମ ନୁହେ ଏରୂପ ଚୃଷ କରି ମାଟିକି ଉତ୍ତମରୂପେ ଚୂର୍ଣ୍ଣ କରିବ ତପୂରେ ଧାନ ବୁଣି ମଇଦ୍ୱାରା ଭୂମିକି ସମତୁଲ କରିବ, ଗଛ ଉଠି କିଛି ବଡ ହେଲା ଉତ୍ତାରୁ

---

* ଯେଉଁ ଧାନରେ ଅଧିକ ସମୟ ଲାଗେ ଓ ନଦୀ ବୃଦ୍ଧି ପ୍ରଭୃତିରେ ଧାନ ଆଦକାଳରେ ସଡ ଯାଏ ।

ଛହିଁରେ ବଦା ଦେଇ ବନ୍ଧବନ୍ଧ କରିବ । କୋଳଥ ଧାନ ଭାଦ୍ରବ ମାସରେ କଟାଯାଏ । କୋଳଥ, ବଳକାରକ, ପଥ୍ୟ ଓ ଅଗ୍ନିବର୍ଦ୍ଧକ ।

## ଦାଳୁଅ ଧାନ ।

ଏହି ଧାନ ଗ୍ରୀଷ୍ମକାଳରେ ହୁଅଇ । ଖାଲ ଭୂମି ଏହା ପକ୍ଷରେ ଅତ୍ୟୁତ୍ତମ ସ୍ଥାନ । ମାଘମାସ ଆଦ୍ୟରୁ ଜମିକି ଉତ୍ତମ-ରୂପେ ଚଷ କରି କର୍ଦ୍ଦମମୟ କରିବ, ଧାନକୁ ଗର୍ତ୍ତରେ ଜଳରେ ଭିଜାଇ ରଖି ପରଦିନ ସେହି ଧାନ ନେଇ ଉକ୍ତ କର୍ଦ୍ଦମମୟ ଭୂମିରେ ଛିଞ୍ଚି ପକାଇବ, ଏହାକୁ ଲୋକେ "ଅଙ୍କୁ-ରା" କହନ୍ତି । ତଦନନ୍ତର ଗଛ ହେଲା ଉତ୍ତାରୁ ଆବଶ୍ୟକ ମତେ ତହିଁରେ ପାଣି ଦେବାକୁ ହେବ । ଦାଳୁଅ ଗୁରୁପାକ ଓ ଅପଥ୍ୟ ।

## ବ୍ରୀହି ।

ବ୍ରୀହି ଚଷରେ ପ୍ରାୟ ଅଧିକ ପରିଶ୍ରମ ହୁଏ ନାହିଁ । ଭାଦ୍ର-ବମାସ ଓ ଆଶ୍ୱିନର କେତେ ଦିନ ବ୍ରୀହି ଚଷର ଉତ୍ତମ ସମୟ, ଭୂମିକି ତିନିଓଳି ଚଷ କରି ତହିଁରେ ବ୍ରୀହି ବୁଣି ମଇଦ୍ୱାରା ଭୂମିକି ସମାନ କରିବ । ବ୍ରୀହି ଦୁଇ ପ୍ରକାରେ । ଖୁଣ୍ଟି ବ୍ରୀହି ଓ ଲହ ବ୍ରୀହି । ଲହି ବ୍ରୀହି ଶାରଦ ଧାନ ସଙ୍ଗେ ହୁଅଇ । ମୁଗ ଓ କୋଳଥର ଚଷ ବ୍ରୀହି ଚଷ ତୁଲ୍ୟ । ଠେଙ୍ଗା ମୁଗ ଓ ଠେଙ୍ଗା କୋଳଥ ପୁଷ୍ୟମାସରେ ବୁଣା ଯାଏ । ବ୍ରୀହି ସ୍ନିଗ୍ଧ ଓ ବହୁ ମଳକାରକ । ମୁଗ ବାତନାଶକ, ରୁଚ୍ୟ ଓ ଶ୍ଳେଷ୍ମକାରୀ । କୋଳଥ ଉଷ୍ଣ, ବାତକଫନାଶକ ଗୁଳ୍ମନସୂଦନ, ଓ କାଶହନ୍ତା ।

## କଡା ।

ମିଶ୍ରିତ ମୃତ୍ତିକାରେ କଡା ଉତ୍ତମ ହୁଏ । କଡାର ଚାଷ ଭାଦ୍ରବମାସରେ ଆରମ୍ଭ ହୁଏ । ଭୂମିକୁ ଉତ୍ତମରୂପେ ୭ ଓଡାରୁ କମ ନୁହେ ଏରୂପ ଚାଷ କରି ମାଟିକୁ ଚୂର୍ଣ୍ଣ କରିବ । ତଦନନ୍ତର ଲଙ୍ଗଳ ସିଆର ସଙ୍ଗେ୨ ଅର୍ଦ୍ଧ ହାତ ଛଡାରେ ଗୋଟିଏ୨ କଡ଼ା ପକାଇ ମଇଦ୍ୱାରା ଭୂମିକି ସମାନ କରିବ ଗଛ ଉଠିଲା ଉତ୍ତାରୁ ତାହାର ଚାରିପାଖ କୋଡଦ୍ୱାରା ଖନନ କରିବାକୁ ହେବ । କଡ଼ା ମଧ୍ୟ କାର୍ତ୍ତିକ, ମାର୍ଗଶିର ମାସରେ ଅନେକ ସ୍ଥାନରେ ଲଗାଇଥା କଡା ଅତିଶସ୍ୟ ଭେଦକ ।

## ମୂଳା ।

କାର୍ତ୍ତିକ ମାସରେ ମୂଳାର ଚାଷ ଆରମ୍ଭ ହୁଏ, ମିଶ୍ରିତ ମୃତ୍ତିକା ମୂଳା ପକ୍ଷରେ ଅତି ଉତ୍ତମ ସ୍ଥାନ । ଭୂମିକୁ ଏରୂପ ଚାଷ କରିବାକୁ ହେବ ଯେ ସମସ୍ତ କ୍ଷେତ୍ରର ଏକ ହସ୍ତ ଗଭୀରର ମୃତ୍ତିକା ପର୍ଯ୍ୟନ୍ତ ଅଲଗା ହୋଇ ଯିବ । ତଦନନ୍ତର ମୃତ୍ତିକାକୁ ଧୂଳିବତ୍ ଚୂର୍ଣ୍ଣ କରି ତହିଁରେ ଗୋମୟର ସାର ବା ପିଡିଆ ଦେଇ ମଇଦ୍ୱାରା ଭୂମିକୁ ସମାନ କରି ମୂଳାର ମଞ୍ଜି ବୁଣିବାକୁ ହେବ । ତଦନନ୍ତର ଉକ୍ତ କ୍ଷେତ୍ରୋପରି ଏକବାର ମଇ ଚଳାଇ ଦେବ । ମୂଳାର ଗଛ ଉଠିଲା ଉତ୍ତାରୁ ସେମାନଙ୍କୁ ଅଧ୨ ହାତ ଛଡା ରଖିବା ନିମିତ୍ତ ମଝିରେ୨ ଯେଉଁ ସମସ୍ତ ଗଛ ଥିବ ତାହା ଓପାଡ଼ି ଦେବ । ଗଛ ଗୁଡ଼ିକ ବହଳ ରହିଲେ ମୂଳା ବଡ଼ ହୁଅଇ ନାହିଁ । ତିନି ଚାରିବରଷର ପୁରୁଣା ମଞ୍ଜିରେ ମୂଳା ଭଲ ହୁଏ । ନୂଆ ମଞ୍ଜି ବୁଣିଲେ ମୂଳା ମୋଟ ହୁଅଇ ନାହିଁ । ଏକ ଗୁଣ୍ଠ ଭୂମିରେ ଏକଛଟାଙ୍କି ମୂଳାମଞ୍ଜି ବୁଣିଲେ ଯଥେଷ୍ଟ ହେବ । ମୂଳା

ପୁଷ୍ଟିକର, ଅଗ୍ନିବର୍ଦ୍ଧକ, ଅମନାଶକ, କଂଶ୍ୟ ମୂଳା ଅଳ୍ପ ଝାଗ ଓ ପିତ୍ର ବୃଦ୍ଧିକାରୀ ।

## କନ୍ଦମୂଳ ।

ମିଶ୍ରିତ ମୃତ୍ତିକାରେ କନ୍ଦମୂଳ ଉତ୍ତମ ହୁଏ । ପ୍ରଥମତଃ ପାଚଲ କନ୍ଦମୂଳ ମୃତ୍ତିକାରେ ପୋତିବ, ତହିଁରୁ ଗଛ ହେଲା ଉତ୍ତାରୁ ସେହି ଗଛର ଡାଲ ଆଣି କ୍ଷେତ୍ରରେ ରୋପଣ କରିବାକୁ ହେବ । ଯେଉଁ କ୍ଷେତ୍ରରେ ରୋପଣ କରିବ ସେହି କ୍ଷେତ୍ରକୁ ପୂର୍ବରୁ ଉତ୍ତମରୂପେ ଖନନ କରି ଏକ ଚତୁର୍ଥ ଗଭୀର ଓ ଏକ୨ ହାତ ଓସାର କରି ଗୋଟିଏ୨ ଗୋହି କରିବ । ସେହି ଗୋହିରେ ଡାଲକୁ ପୋତି ତାହାର ଚେର ଭୂମିରେ ମାଡ଼ିଲା ପର୍ଯ୍ୟନ୍ତ କଷ୍ଟିତ୍ରୁ୨ ପାଣି ଦେବ । ଅଷାଢ଼ ଓ ଶ୍ରାବଣ ମାସ ଏହି ଗୃଷର ଉତ୍କୃଷ୍ଟ ସମୟ । କନ୍ଦମୂଳ ସୁସ୍ୱାଦ ଓ ଅମକରକ ।

## କପା ।

ଯେଉଁ ମୃତ୍ତିକାରେ ବାଲିର ଅଂଶ ଅପେକ୍ଷା ମଟାଳ ମୃତ୍ତିକାର ଅଂଶ ଅଧିକ କପା ଗୃଷ ପକ୍ଷରେ ସେହି ମୃତ୍ତିକା ଅତ୍ୟୁତ୍ତମ । କ୍ଷେତ୍ରକୁ ଉତ୍ତମ ରୂପେ ଖନନ କରି ତହିଁରେ ଗୋମୟ ସାର ବା ପିଡ଼ିଆ ଦେଇ ରଖିବ । ଅନନ୍ତର କପାର ମଞ୍ଜିକି ଗୋବରପାଣିରେ ଗୋଳାଇ କ୍ଷେତ୍ରରେ ବୁଣିବ । ଏରୂପ କଲେ ଶୀଘ୍ର ଅଙ୍କୁର ଉଠେ ଗୃଭୁର୍ମାସ୍ୟା କପା ହେଲେ ସିଆର ସଙ୍ଗେ ୨ ଅର୍ଦ୍ଧ ହସ୍ତ ଅନ୍ତରରେ ପୁଞ୍ଜି ଦେବ, ଏବଂ ଗୋଟିଏ୨ ଗାତ କରି ସେହି ଗାତରୁ ମାଟି ତୋଳି ଗଛର ମୂଳରେ ପକାଇବ । ଶୀତ କାଳ କପାରେ ସମୟେ୨ ଜଳସେଚନ କରିବାକୁ ହେବ । କପା ତନ୍ତୁ

କାର, କାଲର ବଳଦଥା ଓ ବାଡ କପା । କାର୍ପାସ ବସ୍ତ୍ର ଲୋକଙ୍କର ଅଧିକ ପ୍ରୟୋଜନୀୟ । ଭୁଲା କ୍ଷେୟରେ ଶସ୍ୟର ଅଧିକ ଗରମ ହୁଏ ।

## ବାଇଗଣ ।

ମିଶ୍ରିତ ମୃତ୍ତିକା ବାଇଗଣ ପକ୍ଷରେ ଉତ୍କୃଷ୍ଟ ସ୍ଥାନ । ପାଚଲା ବାଇଗଣ ଶୁଖାଇ କରି ତାହାର ମଞ୍ଜି ରଖିବ, ସେହି ମଞ୍ଜିରେ ଚଳ ପକାଇବାପାଇଁ ଗୋଟିଏ ସ୍ୱତନ୍ତ୍ର ସ୍ଥାନକୁ ଚାଷ କରି ତାହାର ମାଟିକ ଉତ୍ତମରୂପେ ଚୂର୍ଣ୍ଣ କରିବ; ଉକ୍ତ ମଞ୍ଜିକ ଦୁଇ ଦିନ ଥଣ୍ଡା ଜଳରେ ଭିଜାଇ ରଖି ସେହି କ୍ଷେତ୍ରରେ ବୁଣିବ, କ୍ଷେତ୍ରରେ ଯେରୂପ ଜଳ ନ ରହିବ ସେ ବିଷୟରେ ଉତ୍କୃଷ୍ଟ ଉପାୟ ଅବଲମ୍ବନ କରିବାକୁ ହେବ, ଖରାଦିନେ ବାଇଗଣ ଚଳ ପକାଇ ଥିଲେ ତାହା ଉପରେ ଅତି ସୂକ୍ଷ୍ମଧାରରେ ଜଳସେଚନ କରିବାକୁ ହେବ । ଅନନ୍ତର ଅଙ୍କୁର ଉତ୍ପନ୍ନ ହୋଇ ଚଳ ୬ ଅଙ୍ଗୁଳ ଉଚ୍ଚ ହେଲେ ତାହାକୁ ନେଇ ଏକ୨ ହାତ ଛଡାରେ ଧାଡି୨ କରି କ୍ଷେତ୍ରରେ ରୋପଣ କରିବ । ଯେଉଁ କ୍ଷେତ୍ରରେ ରୋପଣ କରାଯିବ, ସେହି କ୍ଷେତ୍ରକୁ ପୂର୍ବରୁ ଉତ୍ତମରୂପେ ଚାଷ ଓ ମୃତ୍ତିକା ଚୂର୍ଣ୍ଣ କରି ଖତ ଦେଇ ରଖିଥିବ । ଚଳ ପୋତିଲା ଉତ୍ତାରୁ ଯେତେ ଦିନ ପର୍ଯ୍ୟନ୍ତ ତାହାର ଚେର ମାଟି ଧରି ନ ଥିବ, ତେତେଦିନ ପର୍ଯ୍ୟନ୍ତ ସନ୍ଧ୍ୟା ସମୟରେ ତହିଁରେ କିଛି୨ ଜଳ ଦେଉଥିବ, ଚେର ଭଲରୂପେ ମୃତ୍ତିକା ଧରିଲା ଉତ୍ତାରୁ ତାହାର ଚତୁଃପାର୍ଶ୍ୱ କୋଡିଦ୍ୱାରା ଅଳ୍ପ ପରିମାଣେ ଖନନ କରି ଗଛର ମୂଳରେ ହୁଡା ବାନ୍ଧିବ । ବଡ଼୨ କିଆରି ହେଲେ ଧାଡିର ଉଭୟ ପାର୍ଶ୍ୱ ଲଙ୍ଗଳଦ୍ୱାରା ଚାଷ କରାଯାଏ

ଗଛ ବିଶେଷ ବଡ ହେଲେ ତାହାକୁ ଖେତରେ ବିଅରବନ୍ଧ କରି ତହିଁରେ ଆବଶ୍ୟକ ମତ ଜଳ ଦେଉଥିବ । ଏହି ନିୟମରେ ବାଇଗଣ ଚାଷ କଲେ ଫଳ ବଡ ହୁଅଇ । ବାଇଗଣ ଅନେକପ୍ରକାର । ନାସିକେଳ, ପାଳୁଅ, ହରପୁର, କଣ୍ଟାଇମୁଣ୍ଡି, ଭୁଟୁଅ ଇତ୍ୟାଦି । କଣ୍ଟାଇମୁଣ୍ଡି ବାଇଗଣ ବଡ଼ ସୁସ୍ୱାଦୁ, ଏହା ଶୀତକାଳରେ ହୁଏ । ଭୁଟୁଅ ଓ ପାଳୁଅ ବସନ୍ତକାଳରେ ହୁଅନ୍ତି । ବାଇଗଣ ବାୟୁ ଓ ଅରୁଚି ନାଶକ ଅଗ୍ନି ଶୁକ୍ର ଓ ରକ୍ତବର୍ଦ୍ଧକ, କିନ୍ତୁ ପାଚିଲା ବାଇଗଣ ବଡ ଗରିଷ୍ଠ ଏହା ଖାଇଲେ ଅନେକ ରୋଗ ଜାତ ହୁଏ ।

## କୋବି ।

କୋବି ଶୀତପ୍ରଧାନ ଦେଶରେ ଅଧିକ ପରିମାଣରେ ଜାତ ହୁଏ ; ଅମ୍ଭମାନଙ୍କ ଦେଶରେ ଏବେ ଏହାର ଚାଷ ଆରମ୍ଭ ହୋଇଅଛି । ମିଶ୍ରିତ ମୃତ୍ତିକା ବିଶିଷ୍ଟ କ୍ଷେତ୍ର କୋବି ଚାଷ ପକ୍ଷରେ ଉପଯୁକ୍ତ । ଏହାର ଚାରା କରି କ୍ଷେତ୍ରରେ ରୋପଣ କରିବାକୁ ହୁଏ । ଚାରା କରିବାକୁ ହେଲେ ପ୍ରଥମତଃ ମିଶ୍ରିତ ମୃତ୍ତିକାବିଶିଷ୍ଟ କୌଣସି ସ୍ୱତନ୍ତ୍ର ସ୍ଥାନର ମୃତ୍ତିକା ଉତ୍ତମରୂପେ ଚୂର୍ଣ୍ଣ କରି ତହିଁରେ ସାର ଦେଇ କୋବିର ବୀଜ ପକାଇବାକୁ ହେବ । ଅନନ୍ତର ସେମାନଙ୍କୁ ରୌଦ୍ରର ଉତ୍ତାପରୁ ରକ୍ଷା କରିବାର ନିମିତ୍ତ ଦିବସରେ ସେହି ସ୍ଥାନର ଉପରେ କୌଣସି ଉପଯୁକ୍ତ ଆବରଣ ରଖି ରାତ୍ରିକାଳରେ ତାହା ଅଲଗା ରଖିବାର ଆବଶ୍ୟକ । ତଦନନ୍ତର ବୀଜରୁ ଅଙ୍କୁରୋତ୍ପନ୍ନ ହୋଇ କ୍ରମେ ଚାରାରୂପେ ପରିଣତ ହେଲେ ସେହି ସ୍ଥାନରେ ପାଣି ଦେଇ ମାଟି କାଦୁଅପରି କରି ଅତି ସାବଧାନରେ ଚାରାଗୁଡିକ ଉଠାଇ ନେଇ କ୍ଷେତ୍ରରେ ରୋପଣ କରିବ

ରୋପଣ କରିବାର ପୂର୍ବରୁ କ୍ଷେତ୍ରକୁ ଉତ୍ତମରୂପେ ଚୃଷ ଓ ମୃତ୍ତିକାକୁ ଚୂର୍ଣ୍ଣ କରି ତହିଁରେ ଗୋମୟର ସାର ଦେବ, ପରେ ମଇ ଟାଣି କ୍ଷେତ୍ରର ସବୁ ସ୍ଥାନର ମୃତ୍ତିକା ସମାନ କରି ଦେଇସାରି ବା ସାଇପ୍ତା ବ୍ୟବଧାନରେ ଧାଡ଼ି୨ ହୁଡ଼ା ବାନ୍ଧିବ ସେହି ହୁଡ଼ାର ଉପରେ ଏକ୨ ହାତ ଅନ୍ତର କୋବିର ଗଛଗୁଡ଼ିକ ରୋପଣ କରିବ, ଗଛ ମୃତ୍ତିକାକୁ ଦୃଢ଼ରୂପେ ଆଶ୍ରୟ କରିବା ପର୍ଯ୍ୟନ୍ତ ପ୍ରତିଦିନ ପ୍ରାତଃକାଳରୁ ସନ୍ଧ୍ୟାପର୍ଯ୍ୟନ୍ତ ଛାହା ଉପରେ କଦଳୀପତ୍ର ବା ଅନ୍ୟ କୌଣସି ଆବରଣଦ୍ୱାରା ଘୋଡ଼ାଇ ରଖିବ । ଅନନ୍ତର ସନ୍ଧ୍ୟା ସମୟରେ ଅତି ସୂକ୍ଷ୍ମଧାରରେ ସେମାନଙ୍କ ମୂଳରେ ଜଳସେଚନ କରିବାକୁ ଦେବ । ଗଛଗୁଡ଼ିକ ବଦ୍ଧମୂଳ ଓ ସଜୀବ ହୋଇ ଉଠିଲେ ସମୟେ୨ ସେମାନଙ୍କ ମୂଳର ମାଟି ଅଲଗା କରୁଥିବ । ବନ୍ଧାକୋବି ହେଲେ ସେମାନଙ୍କ ଚାରପାଖର ପତ୍ର ଏକତ୍ର କରି ରଜ୍ଜୁଦ୍ୱାରା ବାନ୍ଧିବ, ଓଲ୍‌କୋବି ଓ ଫୁଲ୍‌କୋବିରେ ସେରୂପ କରିବାର ଆବଶ୍ୟକ ନାହିଁ । କୋବି ଅତ୍ୟନ୍ତ ପୁଷ୍ଟିକର, ସୁସ୍ୱାଦ ଓ ଅମ୍ଳକାରକ ।

## ଧୂଆଁପତ୍ର ।

କାର୍ତ୍ତିକ ମାର୍ଗଶିର ଏହି ଦୁଇ ମାସ ଧୂଆଁ ପତ୍ର ଚୃଷର ଉତ୍କୃଷ୍ଟ ସମୟ, ମିଶ୍ରିତ ମୃତ୍ତିକା ବିଶିଷ୍ଟ କ୍ଷେତ୍ର ଏହା ପକ୍ଷରେ ଉପଯୁକ୍ତ । ପ୍ରଥମତଃ କୌଣସି ସ୍ୱତନ୍ତ୍ର ସ୍ଥାନର ମୃତ୍ତିକା ଖନନ ଓ ଉତ୍ତମରୂପେ ଚୂର୍ଣ୍ଣ କରି ତହିଁରେ ଗୋମୟ ସାର ଦେବ, ପରେ ଧୂଆଁ ପତ୍ରର ବିଜ ବୁଣି ଚାରା ପକାଇବ, ଏଣେ ଯେଉଁ କ୍ଷେତ୍ରରେ ଚାରା ଲଗାଇବାକୁ ହେବ, ସେ କ୍ଷେତ୍ରର ମୃତ୍ତିକା ଖନନ, ଚୂର୍ଣ୍ଣ କରଣ, ଓ ସାର ପ୍ରଦାନ ପ୍ରଭୃତି କାର୍ଯ୍ୟ

କରି ଧାଡ଼ି କରି ହୁଡ଼ା ବାନ୍ଧିବ । ଅନନ୍ତର ପ୍ରତି ହୁଡ଼ାର ମଧ୍ୟସ୍ଥ ନିମ୍ନ ଭୂମିରେ ଅଧ ହାତ ଅନ୍ତରରେ ଚାର ରୋପଣ କରିବ, ତାହାର ପରେ ଯେ ପର୍ଯ୍ୟନ୍ତ ଉତ୍ତମରୂପେ ମୃତ୍ତିକାକୁ ଆଶ୍ରୟ ନେଇ ନ ଥିବ ସେ ପର୍ଯ୍ୟନ୍ତ ସୂର୍ଯ୍ୟର ଉତ୍ତାପରୁ ରକ୍ଷା କରିବା ନିମିତ୍ତ ତାହା ଉପରେ କୌଣସି କୌଶଳ ପୂର୍ବକ ଛାୟା କରିବ । ସୂର୍ଯ୍ୟାସ୍ତ ହେବାକ୍ଷଣି ସେହି ଛାୟା ଉଠାଇ ନେଇ ଅତି ସୂକ୍ଷ୍ମ ଧାରରେ ତାହା ଉପରେ ଜଳସେଚନ କରିବାକୁ ହେବ । ଅନନ୍ତର ଗଛ ଗୁଡ଼ିକ ବଡ଼ ହେଲେ ସେମାନଙ୍କର ପ୍ରଥମ ଜାତ ପତ୍ର, ମସ୍ତକ ଓ ଅନ୍ୟାନ୍ୟ କେତେକ ପତ୍ର ଭାଙ୍ଗି ପକାଇ ଦେବ । ଗଛରେ ବହୁତ ପତ୍ର ରହିଲେ ଧୂଆଁ ପତ୍ର ଆକାରରେ ଶ୍ରେଷ୍ଠ ହୁଏ । ଧୂଆଁ ପତ୍ର ଉତ୍ତେଜକ ଏବଂ ମାଦକ ।

## ପଟୋଳ ।

କାର୍ତ୍ତିକ ମାସରେ ପଟୋଳର ଚାଷ ଆରମ୍ଭ ହୁଏ । ମିଶ୍ରିତ ମୃତ୍ତିକାରେ ପଟୋଳ ଉତ୍ତମ ହୁଏ । କ୍ଷେତ୍ରକୁ ଉତ୍ତମରୂପେ ଖନନ କରି ତହିଁରେ ଗୋବରର ଖତ ବା ପିଡ଼ଆ ଦେଇ ପ୍ରସ୍ତୁତ କରିବ, ତଦନନ୍ତର ସେହି କ୍ଷେତ୍ରରେ ଗୋଟି ହାତ ଛଡ଼ାରେ ଗୋଟିଏ ପହଣି କରିବ, ଏରୂପ କରିବାର କାରଣ ଏହି ଯେ ବର୍ଷା ହେଲେ କ୍ଷେତ୍ରସ୍ଥ ଜଳ ସେହି ପହଣି ବାଟରେ ବାହାରି ଯିବ । ପଟୋଳ ଗଛର ମୂଳ ସରୁ ଦୁଇ ତିନି ଅଙ୍ଗୁଳ ପରିମିତ ଖଣ୍ଡ କରି ସେହି ସମସ୍ତ ଖଣ୍ଡକୁ କୌଣସି ପାତ୍ର ମଧ୍ୟରେ ଗୋବରର ଜଳ ସହିତ ଭିଜାଇ ରଖିବ, ଦୁଇ ତିନି ଦିନ ଗନ୍ଧ ଉତ୍ତାରୁ ତହିଁରେ ପରିମିତରୂପେ ଆଉ କିଛି ଗୋବରର ଜଳ ଦେବ । ଏହିରୂପ କିଛି ଦିନ କାଳ ଉତ୍ତାରୁ

ତହିଁରୁ ଗଛା ବାହାରିବ, ଏହି ଗଛାକୁ ପୂର୍ବୋକ୍ତ ପ୍ରତି ଖୃଇ ଖୃଇ ହାତ କ୍ଷେତ୍ର ମଧ୍ୟରେ ତିନ୍ ଧାଡ଼ି କରି ପୋତିବ । ଅନନ୍ତର ପାଞ୍ଚ ଛ ଦିନ ଅନ୍ତର ତହିଁରେ ପାଣି ଦେଉଥିବ, ଏବଂ ସମୟରେ ମୂଳର ମାଟି ବଦଳାଇ ଦେଉଥିବ । ଏକ ବରଷର ପଟଳ ଗଛରେ ଦୁଇ ବର୍ଷ ପର୍ଯ୍ୟନ୍ତ ପଟଳ ହୁଅଇ ପଟଳ ଅତ୍ୟୁତ୍ତମ ପରିବା, ପଟଳ ବାୟୁ, ପିତ୍ତ, କଫନାଶକ, ଏହା ପୀଡ଼ିତ ଓ ସୁସ୍ଥାବସ୍ଥାରେ ଖିଆ ଯାଇ ପାରେ , ଏହାର ମଞ୍ଜି ବଡ ଅପକାରୀ ଏକାରଣ ତାହା ପରିତ୍ୟାଗ କରି ଖାଇବାର ଉଚିତ, ପଟଳ ମାଛ ସଙ୍ଗେ ରାନ୍ଧି ଖାଇଲେ ମେହ ରୋଗ ନଷ୍ଟ ହୁଏ ।

## ଅଖୁ ।

ଚୈତ୍ର ଓ ବୈଶାଖ ଏହି ଦୁଇ ମାସରେ ଅଖୁର କୃଷି ଆରମ୍ଭ ହୁଏ । ମିଶ୍ରିତ ମୃତ୍ତିକାରେ ଅଖୁ ଉତ୍ତମ ହୁଅଇ । ତିରିଶିଓଡ଼ରୁ କମ ନୁହେ ଏରୂପ ଭୂମିକି ଚାଷ କରି ତହିଁରେ ଗୋବରର ଖତ ବା ପିଡ଼ିଆ ଦେଇ ରଖିବ, ଅନନ୍ତର ଉତ୍ତମ ଅଖୁର ପ୍ରତି ଗଣ୍ଠିରୁ ଉଭୟ ପାର୍ଶ୍ୱରେ ଚାରି ଅଙ୍ଗୁଳ ଛାଡ଼ି ଅଖୁଦଣ୍ଡାକୁ ଖଣ୍ଡ କରି ସେହି ସମସ୍ତ ଅଖୁ ଖଣ୍ଡମାନଙ୍କରେ ଜଳ ସେଚନ କରି ତାହାକୁ ନେଇ ଉକ୍ତ ଭୂମି ଖଣ୍ଡରେ ଏକ ହାତ ଅନ୍ତରରେ ଲଗାଇ ସମୟେ ଅବଶ୍ୟକମତ ଜଳ ସେଚନ କରିବାକୁ ହେବ । ଅଖୁଗଛ ବଡ଼ ହେଲେ ତାହା ମୂଳରୁ ଧରି ଅଗ୍ରପର୍ଯ୍ୟନ୍ତ ସେହି ଗଛ ପତ୍ରରେ ବାନ୍ଧିଦେବ । ଅଖୁର ଚାଷ ଏକବର୍ଷ ମଧ୍ୟରେ ସମାପ୍ତ ହୁଏ । ଅଖୁ ମଧୁର, ତେଜସ୍କର, ସ୍ନିଗ୍ଧ, ଶୁକ୍ର ଓ କଫ ବୃଦ୍ଧିକାରକ ଏବଂ ରକ୍ତପିତ୍ତ ନାଶକ ।

## ଅଦା ଓ ହଳଦ ।

ଅଦା ଆଉ ହଳଦ ଏ ଦୁହିଁଙ୍କର ଚାଷପ୍ରଣାଳୀ ଏକ-ପ୍ରକାର । ବୈଶାଖ ମାସଠାରୁ ଆଷାଢ଼ର ଚଉଦେଇ ଦିନ ପର୍ଯ୍ୟନ୍ତ ଦୁହିଙ୍କର ଚାଷ ଆରମ୍ଭ ହୁଏ । ମିଶ୍ରିତ ମୃତ୍ତିକାବିଶିଷ୍ଟ କ୍ଷେତ୍ରକୁ ଖନନ କରି ଖନିତ ମୃତ୍ତିକା ଧୂଳି ପ୍ରାୟ ଚୂର୍ଣ୍ଣ କରିବ । ଅନନ୍ତର ଦେଢ଼ହାତ ବା ସାତ ପା ଅନ୍ତରରେ ଅଦା ବା ହଳଦର ଗଣ୍ଠି ପୋତିବ । ଗଛ ଜନ୍ମିଲାଉତ୍ତାରୁ ସମୟେ୨ ଅନ୍ୟ୨ ସ୍ଥାନରୁ ମୃତ୍ତିକା ଉଠାଇ ଆଣି ଗଛ ମୂଳରେ ପ୍ରଦାନ କରିବ । ଶୀତକାଳରେ ଏରୂପ ମୃତ୍ତିକା ଦେବାର ଆବଶ୍ୟକ ନାହିଁ । ମାଘ ଓ ଫାଲ୍‌ଗୁନ ମାସରେ କ୍ଷେତ୍ରରୁ ଅଦା ଓ ହଳଦ ଖୋଳିବାକୁ ହୁଏ । ଅଦା, କଟୁ, ଭେଦକ, କଫ, ବାୟୁ, ବଦ୍ଧମଳ ଏବଂ ବେଦନା ନଷ୍ଟକାରୀ । ହଳଦ ପ୍ରମେହ ଏବଂ ପିତ୍ତ ନାଶକ ଓ ରକ୍ତ ପରିଷ୍କାରକ ।

## ଲଙ୍କାମରିଚ ।

ବାଇଗଣ ପରି ଲଙ୍କାମରିଚର ଚାରା ଜନ୍ମାଇ କ୍ଷେତ୍ରରେ ରୋପଣ କରିବାକୁ ହୁଏ । ଏହାର ଚାରା ଜନ୍ମାଇବାର ପ୍ରଣାଳୀ ଅବିକଳ ବାଇଗଣ ତୁଲ୍ୟ । ମିଶ୍ରିତ ମୃତ୍ତିକାବିଶିଷ୍ଟ କ୍ଷେତ୍ରକୁ ଉତ୍ତମରୂପେ ଚାଷ କରି ମୃତ୍ତିକା ଚୂର୍ଣ୍ଣ କରିଛ ଧାଡ଼ି୨ କରିବାରୁ ଗଛଗୁଡ଼ିକ ଏକ୨ ହସ୍ତ ଅନ୍ତରରେ ରୋପଣ କରିବ । ଅନନ୍ତର ଗଛର ଚେର ମୃତ୍ତିକାକୁ ଦୃଢ଼ରୂପେ ଆଶ୍ରୟ କରିବା ପର୍ଯ୍ୟନ୍ତ ଅପରାହ୍ନ କାଳରେ ତାହାର ମୂଳରେ ଜଳ ସେଚନ କରିବ । ଲଙ୍କାମରିଚ କ୍ଷେତ୍ରରେ ଉଦୟଠାରୁ ଅସ୍ତପର୍ଯ୍ୟନ୍ତ ସୂର୍ଯ୍ୟକିରଣ ପଡ଼ିବାର ଆବଶ୍ୟକ । ଛାୟା ଏବଂ ରସବିଶିଷ୍ଟ ଭୂମିରେ ଲଙ୍କାମରିଚ ଲଗାଇଲେ ଅଧିକ ଫଳନ୍ତି ନାହିଁ;

ଏବଂ ସ୍ରଗମଧ କମ ହୁଏ । ଲଙ୍କାମରଚ, କଟୁ, କଫନାଶକ, ରୁକ୍ଷ, ଏବଂ ପିତ୍ତ ବୃଦ୍ଧିକାରୀ । ଏହାର ସଂଯୋଗରେ ବ୍ୟଞ୍ଜନାଦର ସୁସ୍ୱାଦ ଜନ୍ମେ । ଅମ୍ଳିକା ଓ ପିଆଜ ସହିତ ଲଙ୍କାମରଚ ମିଶାଇ ଖାଇଲେ ସଦ୍ୟ ପୀଡ଼ା ଜାତ ହୁଏ ।

## ବନ୍ଧାଅଳୁ ।

ଶ୍ରାବଣମାସର ଶେଷଠାରୁ କାର୍ତ୍ତିକମାସର କେତେକ ଦନ ପର୍ଯ୍ୟନ୍ତ ବନ୍ଧାଅଳୁ ଲଗାଇବାରୁ ଉତ୍କୃଷ୍ଟ ସମୟ । ମିଶ୍ରିତ ମୃତ୍ତିକା, ଯହିଁରେ ବାଲି ଓ ମଟାଳ ସମଭାବରେ ମିଶ୍ରିତ ଅଛି ସେହି ମୃତ୍ତିକା ଅଳୁଗଛ ପକ୍ଷରେ ଉପଯୁକ୍ତ ସ୍ଥାନ । ପ୍ରଥମତଃ ମୃତ୍ତିକାକୁ ଏରୂପ ଗର୍ତ୍ତ କରବାକୁ ହେବ ଯେ ଏକହସ୍ତ ଗଭୀରରୁ ଅଧିକ ମାଟି ଉଠି ଅଲଗା ହେବ । ଅନନ୍ତର ମୃତ୍ତିକାକୁ ଧୂଳପର ଚୂର୍ଣ୍ଣିକର ତହିଁରେ ଗୋମୟର ସାର ବା ପିଡଆ ଦେଇ ମଇହାର ଭୂମିକ ସମାନ କର ଦେଇହାତ ବା ସାତ ପା ଅନ୍ତରରେ ଗୋଟିଏ ହୁଡ଼ା ବାନ୍ଧ, ପ୍ରତ୍ୟେକ ହୁଡ଼ାର ଉପରେ ଅଧହାତ ଅନ୍ତରରେ ଚକ୍ଷୁବିଶିଷ୍ଟ କ୍ଷୁଦ୍ର ବୀଜ ଅଳୁ ରୋପଣ କରବାକୁ ହେବ । ଅନନ୍ତର ଗଛ ଜନ୍ମିଲାଉତ୍ତାରୁ ଉଭୟ ପାର୍ଶ୍ୱ ନିମ୍ନସ୍ଥାନରୁ ମୃତ୍ତିକା ଉଠାଇ ଗଛ ମୂଳକୁ ଅଡ଼ୁଯାଇ ଦେବ, ଗଛ ଯେତେ ବଡ଼ ହେଉଥିବ, ଦୁଇତନ ମାସ ପର୍ଯ୍ୟନ୍ତ ଦଶ ଦନ ଅନ୍ତରରେ ଏହିରୂପ ମୃତ୍ତିକା ଉଠାଇ ଦେଉଥିବ । ଗଛ ସତେଜ ରହିବା ନମିତ୍ତ ଅବଶ୍ୟକମତେ ଉଭୟ ପାର୍ଶ୍ୱ ନାଳରେ ଜଳ ପ୍ରଦାନ କରବ । ଅଳୁ ମାର୍ଗଶିରଠାରୁ ଫାଲ୍‌ଗୁନ ପର୍ଯ୍ୟନ୍ତ ଭୂମିରୁ ଖୋଳାଯାଏ । ବୀଜ ଅଳୁ ରୋପଣ କଲେ କ୍ଷୁଦ୍ର ଅଳୁ ଜାତ ହୁଏ, ମାତ୍ର ତାହାର ଚକ୍ଷୁ କାଟି ପୋତିଲେ

ଆଳୁ ଆକାରରେ ବଡ଼ ହୁଏ । ଆଳୁ ଉତ୍କୃଷ୍ଟ ପରିବା ମଧ୍ୟରେ ଗଣନୀୟ । ଇଂଲଣ୍ଡ, ସ୍କଟଲଣ୍ଡ, ଓ ଆମେରିକା ପ୍ରଭୃତିର ଅଧିକାଂଶ ଲୋକ ଆଳୁ ଖାଇ ଜୀବନଧାରଣ କରନ୍ତି । ଆଳୁ, ପୁଷ୍ଟିକର, ରୁଚିକର, ତେଜସ୍କର, ଓ କଫଲ ଆମଜନକ ।

## ଅରାରୁଟ ।

ବୈଶାଖ ମାସଠାରୁ ଆଷାଢ଼ର କେତେକ ଦିନ ପର୍ଯ୍ୟନ୍ତ ଅରାରୁଟର ଚାଷ ହୁଏ । ମିଶ୍ରିତ ମୃତ୍ତିକା ଏହା ପକ୍ଷରେ ଉତ୍କୃଷ୍ଟ ସ୍ଥାନ । ପ୍ରଥମତଃ ଭୂମିକି ଅଧିକ ପରିମାଣେ ଖୋଳି ଓ ମୃତ୍ତିକାକୁ ଉତ୍ତମରୂପେ ଚୂର୍ଣ୍ଣ କରି ଉର୍ଦ୍ଧ୍ୱରେ ସାର ଦେଇ ଅଳ୍ପ କଅରି ପରି ଧାଡ଼ି ହୁଡ଼ା ବାନ୍ଧିବ । ଅନନ୍ତର ଅଧ ହାତ ଅନ୍ତରରେ ଅରାରୁଟର ମୂଳ ପୋତିବାକୁ ହେବ । ଗଛ ହେଲା ଉତ୍ତାରୁ ସମୟେ ତାହାର ପାର୍ଶ୍ୱସ୍ଥ ନାଳରୁ ମୃତ୍ତିକା ଉଠାଇ ଗଛର ମୂଳସବୁ ଘୋଡ଼ାଇବ । ଶୀତକାଳ ଆରମ୍ଭ ହେଲେ ସେପରି ମୂଳରେ ମୃତ୍ତିକା ଦେବାର ପ୍ରୟୋଜନ ନାହିଁ । ମୃତ୍ତିକା ସରସ ଥିବା ସମୟରେ ଜଳ-ସେଚନ ନିଷିଦ୍ଧ । ମୃତ୍ତିକା ଯେତେବେଳେ ବିଶେଷ ରସ-ହୀନ ବୋଧ ହେବ, ସେତେବେଳେ ଜଳ ପ୍ରଦାନ କରିବ । ମାଘ, ଫାଲ୍‌ଗୁନ ମାସରେ କ୍ଷେତ୍ରରୁ ଅରାରୁଟର ଗଛ ଉଠା-ଯାଏ । ଅରାରୁଟ ସେହି ଗଛର ମୂଳରୁ ପ୍ରସ୍ତୁତ କରା ଯାଏ । ମୂଳସବୁ ଜଳରେ ଉତ୍ତମରୂପେ ଧୋଇ କ୍ଷୁରଦ୍ୱାରା ତାହାର ଛାଲ ଛଡ଼ାଇବ । ଅନନ୍ତର ତାହାକୁ ଢିଙ୍କିରେ ଉତ୍ତମରୂପେ ଚୂର୍ଣ୍ଣ କରି ଛାଙ୍କିରେ ଚଲାଇ ନିର୍ମଳ ଜଳରେ ବାରମ୍ବାର ଧୌତ କରି ଶୁଖାଇଲେ ଅରାରୁଟ ପ୍ରସ୍ତୁତ ହୁଏ । ଅରାରୁଟ

ଅର୍ଦ୍ଧଶସ୍ୟ ପୁଷ୍ଟିକର, ଶୀତଳ, ଓ ଲଘୁପାକ, ରୋଗୀଙ୍କ ପକ୍ଷରେ ଏହା ଅତି ଉପକାରୀ, ଦୁଗ୍ଧପୋଷ୍ୟ ଶିଶୁମାନଙ୍କୁ ଅନ୍ନ ଖୁଆଇବା ପୂର୍ବରୁ ଅନେକ ଲୋକେ ଆରାରୁଟ ଖୁଆନ୍ତି, ଏଥିରେ ବାଳକ ସତେଜ ଓ ସବଳ ହୁଏ ।

## ଗହମ ।

ଆଶ୍ୱିନ ଓ କାର୍ତ୍ତିକମାସ ଗହମ ଚାଷ ପକ୍ଷରେ ଉପଯୁକ୍ତ ସମୟ । ପ୍ରଥମତଃ ମିଶ୍ରିତ ମୃତ୍ତିକାବିଶିଷ୍ଟ କ୍ଷେତ୍ରକୁ ଅର୍ଦ୍ଧ ହସ୍ତ ଗଭୀର ପର୍ଯ୍ୟନ୍ତ ଚାଷକରି ମୃତ୍ତିକା ଉତ୍ତମରୂପେ ଚୂର୍ଣ୍ଣ କରିବ । ଅନନ୍ତର କ୍ଷେତ୍ରରେ ଗୋମୂତ୍ରସାର ପ୍ରଦାନ କରିବ ଗହମକୁ କୌଣସି ପଶୁର ମୂତ୍ରରେ ଭିଜାଇ ତଦନନ୍ତର ଶୁଷ୍କ କରି ବୁଣିବ । ଏକମାଣ ଭୂମିରେ ଆଠସେର ଗହମ ବୁଣିବାକୁ ହେବ । ଅନନ୍ତର ଗଛ ବଡ ହେଲେ ତହିଁର ଘାସ ବାଛି ସମୟେ୨ ଜଳ ଦେବାକୁ ହେବ । ଗହମ ଅତିଶୟ ବଳକାରକ । ପଶ୍ଚିମ ଦେଶର ଲୋକେ କେବଳ ଗହମର ରୁଟି ଖାଇ ଜୀବନ ଧାରଣ କରନ୍ତି ।

## ଚିନାବାଦାମ ।

ଆଶ୍ୱିନ୍ୟ ଓ କାର୍ତ୍ତିକ ମାସରେ ଏହାର ଚାଷ ହୁଏ । ପ୍ରଥମତଃ ମିଶ୍ରିତ ମୃତ୍ତିକା ବିଶିଷ୍ଟ କ୍ଷେତ୍ରକୁ ଉତ୍ତମରୂପେ ଚାଷ କରି ମୃତ୍ତିକା ଧୂଳିବତ୍ ଚୂର୍ଣ୍ଣ କରିତଃ ଗୋମୂତ୍ରସାର ଦେଇ ତହିଁରେ ଧାଡି୨ ହୁଡ଼ା ବାନ୍ଧି, ଏକ୨ ହାତ ଅନ୍ତରରେ ଗୋଟିଏ୨ ବୀଜ ରୋପଣ କରିବ । ଅନନ୍ତର ଗଛ ଜନ୍ମିଲେ ତାହାରୁ ମୂଳର ମୃତ୍ତିକା ଅଲଗା କରିବ ଓ ଆବଶ୍ୟକ ମତେ ଜଳ ପ୍ରଦାନ କରିବାକୁ ହେବ । ଚିନାବାଦାମ ଗୁରୁ ପାକ ଓ ପୁଷ୍ଟିକର ଅଧିକ ଖାଇଲେ ଉଦରାମୟ ରୋଗ ଜନ୍ମେ ।

## ସୋରିଷ ।

ଅଶ୍ୱିନର ଶେଷଭାଗଠାରୁ କାର୍ତ୍ତିକର ଶେଷ ପର୍ଯ୍ୟନ୍ତ ସୋରିଷ ବୁଣିବାର ଉପଯୁକ୍ତ ସମୟ, ସୋରିଷ ମଟାଳମାଟିରେ ଅତି ଉତ୍ତମ ହୁଏ । ପ୍ରଥମତଃ ଭୂମିକି ଉତ୍ତମରୂପେ ଚଷି ଓ ମୃତ୍ତିକାକୁ ବିଶେଷରୂପେ ଚୂର୍ଣ୍ଣ କରି ସୋରିଷ ବୁଣିବାକୁ ହେବ । ଏକମାଣ ଭୂମିରେ କିଠିକି ୫ ସେରରୁ ଅଧିକ ବୁଣିବାର ଉଚିତ ନୁହେ । ସୋରିଷକୁ ବୁଣି ସାରି ମଇଦ୍ୱାରା ଭୂମିକି ସମାନ କରିବ । ସୋରିଷ ତେଲ ଅତି ସୁସ୍ୱାଦ ଓ ତିକ୍ତଣ, ଅଧିକ ପରିମାଣରେ ଶରୀରରେ ଲଗାଇଲେ ଗରମ ହୁଏ ।

## ରାଶି ।

ଭାଦ୍ର ଓ ଅଶ୍ୱିନ ମାସରେ ରାଶିର ଚାଷ ଆରମ୍ଭ ହୁଏ । ମିଶ୍ରିତ ମୃତ୍ତିକା ବିଶିଷ୍ଟ ଭୂମି, ନଦୀକୂଳାଟ, ବା ପଡିଆ ପଙ୍କିଳ, ପାହାଡିଆ ଉଇଲମାଳ ରାଶି ବୁଣିବାର ଉପଯୁକ୍ତ ସ୍ଥାନ । ଭୂମିକି ତିନିଓଳି ଚାଷ କରି ମୃତ୍ତିକାକୁ ଉତ୍ତମରୂପେ ଚୂର୍ଣ୍ଣ କରିତ ରାଶି ବୁଣି ମଇଦ୍ୱାରା ଭୂମିକି ସମାନ କରିବ । ବୃଷ୍ଟିଜଳ ଭୂମିରେ ନ ରହି ସ୍ଥାନାନ୍ତରିତ ହେବା ନିମିତ୍ତ କ୍ଷେତ୍ରରେ ଧିଆର କାଟିବାକୁ ହେବ । ରାଶି ଚାଷରେ ଆଉ ଅଧିକ ପରିଶ୍ରମ ନାହିଁ । ରାଶିର ତେଲ ଅତିଶୟ ଶୀତଳ ।

## ପିଆଜ ।

ପିଆଜର ଚାଷ ଶୀତକାଳରେ ଆରମ୍ଭ ହୁଏ । ପ୍ରଥମତଃ ମିଶ୍ରିତ ମୃତ୍ତିକା ବିଶିଷ୍ଟ କ୍ଷେତ୍ରକୁ ଉତ୍ତମରୂପେ ଚାଷ କରି ମୃତ୍ତିକାକୁ ଧୂଳିବତ୍ ଚୂର୍ଣ୍ଣ କରିବ ତହିଁରେ ଅଧିକ ପରିମାଣରେ ଗୋମୟ ଖାର ପ୍ରଦାନ କରି ଛ ବା ସାତଅଙ୍ଗୁଳ

ଅନ୍ତରରେ ଗୋଟିଏ ପିଆଜ ପୋତିବାକୁ ହେବ । ଅନନ୍ତର ପିଆଜର ଗଛ ଉତ୍ପନ୍ନ ହେଲା ଉତ୍ତାରୁ ଗଛ ମୂଳକୁ ମୃତ୍ତିକା ଅଉପାଞ୍ଚ ଦେବ, ଏବଂ ଚତୁର୍ଦ୍ଦିଗର ମାଟିକୁଁ ହାଲୁକା କରିବା ନିମିତ୍ତ କୋଡ଼ିଦ୍ୱାରା ଖନନ କରିବାକୁ ହେବ । ପିଆଜ ଖୋଳିବାର ଦୁଇମାସ ପୂର୍ବରୁ ତାହାର ପତ୍ରମାନ ମଳ ଦେବାର ଉଚିତ ନୋହିଲେ ପତ୍ର ଅଧିକ ପରିମାଣରେ ରସ ଟାଣିବାରୁ ପିଆଜ ଆକାରରେ ବଡ଼ ହୁଅଇ ନାହିଁ । ପିଆଜ ସୁସ୍ୱାଦୁ ବଳକାରକ ଓ ରକ୍ତ ପରିଷ୍କାରକ ।

## ସାରୁ ।

ଜ୍ୟେଷ୍ଠ ଓ ଆଷାଢ଼ ମାସରେ ସାରୁର ଚାଷ ଆରମ୍ଭ ହୁଏ । ମିଶ୍ରିତ ମୃତ୍ତିକା ଏହା ପକ୍ଷରେ ଉତ୍କୃଷ୍ଟ ସ୍ଥାନ, ପ୍ରଥମତଃ କ୍ଷେତ୍ରକୁ ଏକହସ୍ତ ଗଭୀର ପର୍ଯ୍ୟନ୍ତ ଚାଷ କରି ମୃତ୍ତିକାକୁ ଉତ୍ତମରୂପେ ଚୂର୍ଣ୍ଣ କରି ତହିଁରେ ଅଧିକ ପରିମାଣରେ ଗୋମୟସାର ବା ପିଉଅ ମିଶ୍ରିତ କରି କ୍ଷେତ୍ରରେ ଏକ ହସ୍ତ ଛଡାରେ ଗୋଟିଏ ହୁଡ଼ା ବାନ୍ଧି ତହିଁରେ ସାରୁର ମଞ୍ଜି ପୋତିବାକୁ ହେବ । ମାଘ ଶଙ୍ଖସାରୁକୁ ଏକହସ୍ତ ଗଭୀରରେ ଗୋହିକାଟି ତାହାର ଚକ୍ଷୁ ବିଶିଷ୍ଟ ସାରୁକୁ ଲଗାଇବାକୁ ହୁଏ ସାରୁର ଚାଳ ପ୍ରସ୍ତୁତ କରି କେହି ରୋପଣ କରନ୍ତି । ଶଙ୍ଖ ସାରୁ ଅପେକ୍ଷାକୃତ ଦୀର୍ଘକାଳରେ ଖୋଳାଯାଏ ମାତ୍ର କୁଙ୍କ ସାରୁ ପ୍ରଭୃତି ସାରୁମାନ ସାରଦ ଧାନ ସହିତ ଉତ୍ପନ୍ନ ହୁଏ । ସାରୁ ଚାଷରେ ବିଶେଷ ନିୟମ ଏହି ଯେ ଯେଉଁ ଭୂମିରେ ଏକବର୍ଷ ସାରୁ କରିବ ତତ୍ପର ବର୍ଷ ତହିଁରେ ସାରୁ କଲେ ତାହା ଅଧିକ ଫଳବାନ୍ ହୁଏ ନାହିଁ କାରଣ ମୃତ୍ତିକା ଗର୍ଭରେ ଯେଉଁ ସବୁ ଫସଲ ହୁଏ ତହିଁରେ ଭୂମିର ରସ ଅଧିକ

ପତ୍ରମାଣରେ ବ୍ୟୟିତ ହେବାରୁ ତାହାର ଉର୍ବରତା ଶକ୍ତି କମ ହୁଏ । ସାରୁ ପୁଷ୍ଟିକର, ଶୋଥନାଶକ, ରକ୍ତପରିଷ୍କାରକ ଓ ଅମ୍ଳକାରକ ।

## ଚଣା ।

ଚଣାର କୌଣସି ଏକ ନିର୍ଦ୍ଦିଷ୍ଟ ସମୟ ନାହିଁ । ସବୁ ଋତୁରେ ଏହା କରାଯାଇ ପାରେ ପ୍ରଥମତଃ ମିଶ୍ରିତ ମୃତ୍ତିକା-ବିଶିଷ୍ଟ କ୍ଷେତ୍ରକୁ ତିନ ଓଡ଼ରୁ ନ୍ୟୂନ ନୁହେ ଏରୂପ ଚଷ କରି ମୃତ୍ତିକାକୁ ମଇଦ୍ୱାରା ଚୂର୍ଣ୍ଣ କରିତଃ ଚଣାର ବୀହନ ବୁଣିବାକୁ ହେବ । ଗଛ ହେଲା ଉତ୍ତାରୁ ପକ୍ଷୀମାନଙ୍କଠାରୁ ରକ୍ଷା କରିବା ନିମିତ୍ତ ବିଶେଷ ଉପାୟ ଅବଲମ୍ବନ କରିବାକୁ ହେବ ଅନନ୍ତର ଆବଶ୍ୟକ ମତେ ତହିଁରେ ଜଳସେଚନ କରିବ । ଚଣା ତିନିମାସ ମଧ୍ୟରେ ପ୍ରସ୍ତୁତ ହୁଏ । ଏହାର ଦାନା ଅତି ସୂକ୍ଷ୍ମ, ଏଥିର ଚୂଡ଼ା ଅତି ମଧୁର, ଅନେକ ଲୋକ ଚଣାର ଯାଉ କରି ଭୋଜନ କରନ୍ତି ।

## କୋଶଲାଶାକ ।

ଆଶ୍ୱିନ ଓ କାର୍ତ୍ତିକ ମାସ କୋଶଲା ଶାକ ବୁଣିବାର ଉପଯୁକ୍ତ ସମୟ । ମିଶ୍ରିତ ମୃତ୍ତିକାବିଶିଷ୍ଟ କ୍ଷେତ୍ରକୁ ଉତ୍ତମ-ରୂପେ ଚଷ କରି ମୃତ୍ତିକାକୁ ଉତ୍ତମରୂପେ ଚୂର୍ଣ୍ଣକରିତଃ ତହିଁ-ରେ ସାର ଦେଇ କ୍ଷେତ୍ରକୁ ଉତ୍ତମରୂପେ ପରିପାଟି କରିବ । ଅନନ୍ତର ବୀଜବପନ କରି କ୍ଷେତ୍ରର ମୃତ୍ତିକାକୁ ଅଳ୍ପ ପରିମା-ଣରେ ହସ୍ତଦ୍ୱାରା ଲେଉଟାଇ ଦେବ, ମାତ୍ର ଅତି ସାବଧାନ ସହିତ ଏହା କରିବାକୁ ହେବ ଯେମନ୍ତି ଯେପରି ଏକ ଅଙ୍ଗୁଳର ଅଧିକ ଗଭୀରରେ ପଡିବ ନାହିଁ । ଶାକର ଗଛ ହେଲେ ଉତ୍ତାରୁ ପକ୍ଷୀମାନେ ଗଛ ଭକ୍ଷଣ ନ କରିବାପାଇଁ କଣ୍ଟାର

ମଧ୍ୟରେ ଖଣ୍ଡିଏ କାଠି ପୋତି ତାହା ଉପରେ ଏକ ଖଣ୍ଡ ଢଙ୍କାଢନା ବାନ୍ଧିବ ଏବଂ କ୍ଷେତ୍ରରେ ଆବଶ୍ୟକ ମତେ ଜଳ ପ୍ରଦାନ କରୁଥିବ । କୋଶଲାଶାକ ବଡ଼ ସୁସ୍ୱାଦ ଓ ରୁଚିକର ।

## ଲେଟ୍ଟସଶାକ ।

ଲେଟ୍ଟସଶାକ ଫାଲ୍‌ଗୁନ ଚୈତ୍ର ମାସରେ ବୁଣାଯାଏ, ଏହାର ଗୃହ ପ୍ରଣାଳୀ ଠିକ କୋଶଲାଶାକର ଗୃହ ତୁଲ୍ୟ ମାତ୍ର ଏଥିର ଗଛ ଅଧିକ ପରିମାଣରେ ଝଙ୍କା ହୁଏ ଏଣୁ କୋଶଲା ଅପେକ୍ଷା ଅଳ୍ପ ପରିମାଣରେ ମଞ୍ଜି ବୁଣିବାକୁ ହେବ । ଲେଟ୍ଟସ ମଧୁର ଓ କଞ୍ଚା ଅମକର ।

## କଲମ ।

ବୃକ୍ଷରୁ କଲମ ପ୍ରସ୍ତୁତ କରି ତାହାକୁ ବୃକ୍ଷରୂପେ ପରିଣତ କଲେ ସେ ବୃକ୍ଷରେ ପୁଷ୍ପ ଓ ଫଳ ସମଧିକ ଉତ୍କୃଷ୍ଟ ହୁଏ, ଅତଏବ ଅନେକ ବୃକ୍ଷରୁ କଲମ ଜାତ କରାଇବାର ପ୍ରଥା ପ୍ରଚଳିତ ଅଛି । କଲମ ନାନାପ୍ରକାର ତନ୍ମଧ୍ୟରେ କେତେକ ପ୍ରକାର କଲମର ଗୁଣ ନିମ୍ନରେ ପ୍ରଦର୍ଶିତ ହେଲା ।

## ଗୋଟି କଲମ ।

କୌଣସି ଶାଖାର ଦୁଇ ପତ୍ରଗ୍ରନ୍ଥିର ମଧ୍ୟସ୍ଥିତ ସ୍ଥଳକୁ ଛୁରିଦ୍ୱାରା ଚାରି ପାଖର ଛାଲ ଛଡ଼ାଇ କାଷ୍ଠ ସହିତ ଚେଲି ତହିଁରେ ସଢ଼ା ପତ୍ରର ସାର ବା ଗୋମୟମିଶ୍ରିତ ମୃତ୍ତିକା ସହିତ ମିଶ୍ରିତ କରି ଚତୁଃପାର୍ଶ୍ୱରେ ଦେଇ ଛିଣ୍ଡା ମଶିଣା ବା ତଦୁପଯୁକ୍ତ କୌଣସି ଆବରଣ ଦେଇ ବାନ୍ଧିବାକୁ ହେବ । ଏବଂ ତାହା ଉପରେ ଗୋଟିଏ କ୍ଷୁଦ୍ରଛିଦ୍ରବିଶିଷ୍ଟ ଜଳ କଳସ ଏରୂପ ଝୁଲାଇ ରଖିବ ଯେ ତହିଁରୁ ଏକ ବିନ୍ଦୁ ଜଳ ଅନ-

କରିଚ ତାହା ଉପରେ ପଡିବ । ଏହିପରି ଦୁଇମାସ ପର୍ଯ୍ୟନ୍ତ କଲେ ତହିଁରୁ ଶିକଡ଼ ବାହାରିବ । ତହିଁ ଉତ୍ତାରୁ ସେହି ଶିକଡ଼ର ନିମ୍ନ ଭାଗରୁ କାଟି ଅତି ସାବଧାନ ସହିତ ଉଦ୍ୟାନରେ ରୋପଣ କରିବ । ଉଦ୍ୟାନରେ ରୋପଣ କରି ରୌଦ୍ରରୁ ରକ୍ଷା କରିବା ନିମିତ୍ତ କେତେ ଦିନ ପର୍ଯ୍ୟନ୍ତ ଛାୟା କରିବାକୁ ହେବ । ଚୈତ୍ର ଓ ବୈଶାଖମାସ ଏହି କଲମ ବାନ୍ଧିବାର ସମୟ। ଅମ୍ବ ପ୍ରଭୃତି ବଡ ବଡ ବୃକ୍ଷମାନଙ୍କରେ ଏହି କଲମ ପ୍ରସ୍ତୁତ କରାଯାଏ ।

## ମାଟି କଲମ ।

ମାଟି କଲମ କରିବାକୁ ହେଲେ ବୃକ୍ଷର ଡ଼ାଳକୁ ନୁଆଁଇ ଆଣି ମୃତ୍ତିକା ପୂରିତ ପାତ୍ରରେ ପୋତିବାକୁ ହୁଏ । ପ୍ରଥମତଃ ଯେଉଁ ଅଂଶରୁ କଲମ କରିବାକୁ ହେବ ତାହାର ଏକ ପତ୍ର ଗ୍ରନ୍ଥିଠାରୁ ଅନ୍ୟ ପତ୍ର ଗ୍ରନ୍ଥି ପର୍ଯ୍ୟନ୍ତ ଛୁରିଦ୍ୱାରା ସମଭାବରେ ଛାଡିବାକୁ ହେବ । ସେହି ଛାଲି ଅଂଶ ମିଶ୍ରିତ ନ ହେବା ପାଇଁ ମଧ୍ୟ ସ୍ଥଳରେ ଖଣ୍ଡେ କାଷ୍ଠ ଦେଇ ମୃତ୍ତିକାରେ ଏରୂପ ପୋତିବାକୁ ହେବ ଯେ ଶାଖା କୌଣସି ପ୍ରକାରେ ମୃତ୍ତିକାରୁ ଉଠି ପାରିବ ନାହିଁ । ଶାଖାର ସେହି ଅଂଶ ନ ଚିରି କାଷ୍ଠ ସହିତ ଉପରର ଛାଲି ଉଠାଇ ମାଟିରେ ପୋତିଲେ ମଧ୍ୟ ହୁଏ । ଅନନ୍ତର ସମୟେ ସମୟେ ତହିଁରେ ପାଣି ଦେଲେ ତିନି ଚାରିମାସ ମଧ୍ୟରେ ତହିଁରୁ ଶିକଡ଼ ବାହାରିବ, ସେହି ଶିକଡ଼କୁ ସାବଧାନରେ ଶାଖାରୁ ଛେଦନ କରି ଉଦ୍ୟାନରେ ରୋପଣ କରିବ । ଚୈତ୍ର ଓ ବୈଶାଖ ମାସରେ ମାଟି କଲମ ପ୍ରସ୍ତୁତ କରାଯାଏ ।

## ଶାଖା କଲମ ।

ବୃକ୍ଷର ଯେଉଁ ସବୁ ଶାଖା ଓହଳ ପଡ଼ ଥାଏ ସେହି ସବୁ ଶାଖାକୁ ପତ୍ରଗ୍ରନ୍ଥିଠାରୁ କାଟି ସେହି ପତ୍ରଗ୍ରନ୍ଥିଠାରୁ କଂଚର ଛାଲ ଛଡ଼ାଇ ମୃତ୍ତିକାରେ ରୋପଣ କରନ୍ତଃ ପ୍ରତିଦିନ ଜଳ-ପ୍ରଦାନ କଲେ ତହିଁରୁ ଚେର ବାହାର ହୁଏ ଶାଖାରେ ପତ୍ରଗ୍ରନ୍ଥି ନ ଥିଲେ ଶାଖା କଲମ ହୋଇ ପାରେ ନାହିଁ ।

## ଯୋଡ଼ କଲମ ।

ଯୋଡ଼ କଲମ କରିବାକୁ ହେଲେ ପ୍ରଥମତଃ ଗୋଟିଏ ଗୁଣ୍ଡି ପ୍ରସ୍ତୁତ କରିବ । ଅନନ୍ତର ବୃକ୍ଷର ଯେଉଁ ଶାଖାର ଅଂଶ ଗୁଣ୍ଡି ସହିତ ଯୋଡ଼ିବାକୁ ହେବ ତାହାକୁ ଓ ଗୁଣ୍ଡିକୁ ଗୁଣ ଅଙ୍ଗୁଳ ଦୀର୍ଘରେ କଂଚିର କାଷ୍ଠର ସହିତ ଛେଲି ପ-ରସ୍ପରକୁ ଏରୂପ ଯୋଡ଼ିବ ଯେ ମଧ୍ୟରେ କୌଣସିରୂପ ଫାଙ୍କ ନ ରହିବ । ପରେ କୌଣସି ସୂକ୍ଷ୍ମ ରଜ୍ଜୁଦ୍ୱାରା ତାହାକୁ ବନ୍ଧନ କରି ପ୍ରାୟ ଛ ମାସ ପର୍ଯ୍ୟନ୍ତ ସେହି ଅବସ୍ଥାରେ ରଖିବ । ଯେତେବେଳେ ତାହା ଉତ୍ତମରୂପେ ଯୋଡ଼ ଲାଗି ଯିବ, ସେ ତେବେଳେ ନିମ୍ନ ଭାଗରେ ବୃକ୍ଷର ଶାଖା ଓ ଉପରେ ଗୁଣ୍ଡିର ମସ୍ତକ ଛେଦନ କରିବାକୁ ହେବ । ଗୁଣ୍ଡିର ମସ୍ତକ ଛେଦନ ନ କଲେ ଏକ ବୃକ୍ଷରେ ଦୁଇ ପ୍ରକାର ଫଳ ଫଳିବ, ସୁତରାଂ ଯୋଡ଼ କଲମ କରିବାର ପ୍ରୟୋଜନ ସିଦ୍ଧ ହେବ ନାହିଁ । ଶାଖା ଓ ଗୁଣ୍ଡି ସମଜାତୀୟ ନ ହେଲେ ଯୋଡ଼ କଲମ ହୁଏ ନାହିଁ । ଯୋଡ଼ କଲମ ସବୁ ସମୟରେ କରି ଯାଇ ପାରେ ।

## ଚକ୍ଷୁ କଲମ ।

ଉଦ୍ଭିଦମାନଙ୍କର ପତ୍ର ଗ୍ରନ୍ଥିଠାରୁ ଶାଖା ଉତ୍ପନ୍ନ ହେବାର

ଉପଯୁକ୍ତ ଏକ ପ୍ରକାର କୋମଳ ପତ୍ର ଉତ୍ପନ୍ନ ହୁଏ, ତାହାକୁ ସାଧାରଣତଃ ଲୋକେ ଚକ୍ଷୁ କହନ୍ତି । ସେହି ଚକ୍ଷୁଦ୍ୱାରା ଗଛ ଉତ୍ପନ୍ନ କରିବାର ପ୍ରଣାଳୀକୁ ଚକ୍ଷୁକଲମ କୁହାଯାଏ ।

ଉଦ୍ଭିଜ୍ଜର କଂଚରୁ କାଷ୍ଠ ସହିତ ଚକ୍ଷୁ ଉଠାଇ ଆଣି ଅପର କୌଣସି ଶାଖାର ଚକ୍ଷୁବିଶିଷ୍ଟ ସ୍ଥାନରେ ବସାଇବାକୁ ହେବ । ଶାଖାର ଯେଉଁ ସ୍ଥାନରେ ଚକ୍ଷୁ ବସାଇବାକୁ ହେବ ସେହି ସ୍ଥାନରେ ଉପରଭାଗର ଛାଲ ଛୁରିକାଦ୍ୱାରା କଂଚରୁ ତର ବୃକ୍ଷର ଭିତରରେ କାଷ୍ଠ ହେବାରୁ ଉଭୟ ପାର୍ଶ୍ୱରେ ଛାଲ ଅଲଗା କରି ଦେବ । ଏପରି ସାବଧାନରେ କରିବାକୁ ହେବ ଯେ ବୃକ୍ଷର ଛାଲ ବହିର୍ଗତ ହେବ ନାହିଁ ଅଥଚ ଅଭ୍ୟନ୍ତରରେ ଫାଙ୍କ ରହିବ । ଅନନ୍ତର ଅପର ସ୍ଥାନର ଚକ୍ଷୁକୁ କଂଚରୁ କାଷ୍ଠ ସହିତ ଉଠାଇ ଆଣି ସେହି ତର ସ୍ଥାନରେ ବସାଇ ରଜ୍ଜୁଦ୍ୱାରା ଦୃଢ଼ରୂପେ ବନ୍ଧନ କରିବ । ଏବଂ ତହିଁରେ ପ୍ରତିଦିନ ଜଳ ପ୍ରଦାନ କରୁଥିବ, ଓ ସୂର୍ଯ୍ୟ କିରଣରୁ ଓ ବୃଷ୍ଟି ଜଳରୁ ରକ୍ଷା କରିବା ନିମିତ୍ତ କୌଣସି ଉପଯୁକ୍ତ ଆବରଣଦ୍ୱାରା ତାହାକୁ ଆଚ୍ଛାଦନ କରିବ । ଏରୂପ କେତେକ ଦିନ ଉତ୍ତାରୁ ଯୋଡ଼ ଉତ୍ତମରୂପେ ଲାଗିଲେ ଉକ୍ତ ଯୋଡ ସ୍ଥାନରୁ ଶିକଡ ବହିର୍ଗତ ହେବାର ଅବ୍ୟବହିତ ପୂର୍ବେ ଶାଖାର ଉପରର କଳକା ଗୁଡ଼ିକ ଛିନ୍ନ କରି ଦେବ ।

ସମାପ୍ତ ।



